# ବାମଣ୍ଡା-ରାଜ-ପ୍ରଶସ୍ତି

ଶ୍ରୀମଧୁସୂଦନ ରାଓ

# ବାମଣ୍ଡା-ଗଜ-ପ୍ରଶସ୍ତି ।

ରାୟ ଶ୍ରୀମଧୁସୂଦନ ରାଓ ବାହାଦୁର
ପ୍ରଣୀତ ।

ଶ୍ରୀଦୀନବନ୍ଧୁ ଗଡ଼ନାୟକ ପ୍ରେସ ସେକ୍ରେଟରୀଙ୍କ ଦ୍ୱାରା
ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ ମୁଦ୍ରିତ ।
ବାମଣ୍ଡା ।
୧୯୧୧

# ବାମଣ୍ଡାରାଜ
# ମହାତ୍ମା ଶ୍ରୀ ଶ୍ରୀ ଶ୍ରୀ ସଚ୍ଚିଦାନନ୍ଦ
# ତ୍ରିଭୁବନଦେବ ମହୋଦୟଙ୍କ ପ୍ରତି ।

ଜୟ ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ
ଦେବ ଦେବ-ମନା
ଧନ୍ୟ ହେ ରାଜନ ତବ ରାଜୋଚିତ
ଜୀବନ - ସାଧନା ।
ଜୟ ଯୋଗ୍ୟ ବଂଶଧର ପୁଣ୍ୟଶ୍ଳୋକ
ଶ୍ରୀ ଗଙ୍ଗ ବଂଶର
ଗଙ୍ଗାସୂନୁ ଶାନ୍ତନବ - ସମ ଶାନ୍ତ
ସଂଯମ - ସଙ୍ଗର ।
ସଂପଦର ଭୋଗ ତବ ଜ୍ଞାନ — କର୍ମ-
ଯୋଗର ସଂବନ୍ଧେ
ସୁସଂଗତ ସୁସଂହତ ସୁମଙ୍ଗଳ
ଆଚାର - ନିୟମେ ।
ମହାଯଶା କର୍ମବୀର ତାତ ତବ
ମନୀଷି - ସତ୍ତମ

ନୃପବର ବାସୁଦେବଙ୍କ ଶ୍ରୀସୁଭାଲ
ଦେବ ଦେବୋପମ ।
ଦିବ୍ୟନେତ୍ରେ ଦେବଲୋକୁଁ ଦେଖୁଛନ୍ତି
ଅନନ୍ଦିତ ଚିତ୍ତେ
ଜ୍ଞାନପୂତ କର୍ମପଥେ ଗତିଭବ
ନୃପତି – ଚରିତେ ।
ଚତୁର୍ବର୍ଗ ଫଳପ୍ରଦ ଗାର୍ହସ୍ଥ୍ୟାଶ୍ରମ
ସର୍ବାଶ୍ରମ-ସାର
ସେ ଆଶ୍ରମ ତପୋବନ ଧର୍ମକ୍ଷେତ୍ର
ମହା ତପସ୍ୟାର ।
ଐଶୀଶକ୍ତି – ପ୍ରଭବରେ ଜଗତର
ଅଭାବ – ପୂରଣ
ହେ ସଜ୍ଜନ ରାଜଧର୍ମ ଏହି ମହା --
ବ୍ରତ – ଆଚରଣ
ଦୀକ୍ଷିତ ଏ ସୁଦୃଷ୍ଟର ସୁଦୃସ୍ତର
ମହାପୁଣ୍ୟ ବ୍ରତେ
ଜ୍ଞାନ-ବିଜ୍ଞାନର ଶକ୍ତି – ପ୍ରୟୋଗରେ
ରତ ଅନବରତେ ।

ପ୍ରଜାକୁଳ ଆଧିବ୍ୟାଧି ଦୁଃଖଗ୍ଲାନି-
ହରଣେ ପ୍ରୟାସୀ
ପ୍ରଜାଙ୍କ ପିତାମାତା ଜ୍ଞାନଦାତା
ଧର୍ମ - ଅନ୍ତେବାସୀ ।

ଉନ୍ନତ ଲଲାଟେ ରାଜ - ଗୌରବରେ
ଟେକ ରାଜଶିର
ଆତ୍ମ ମର୍ଯ୍ୟାଦାର ଟେକ ରଖିଅଛ
ହେ କଳିଙ୍ଗ ବୀର ।

ପୁଣି ନତ ବିନମ୍ରେ ଫଳଭରେ
ନତ ତରୁ ସମ
ବିନମ୍ର ସୃଜନ ସୌମ୍ୟ ଶକ୍ତିଶୋଭା
ଦେଖାଅଛ ଧୀର ।

ଶ୍ରୀକରେ ଶାସନ - ଦଣ୍ଡ ନ୍ୟାୟ-କ୍ଷମା-
କ୍ଷେମେ ସୁଗଠିତ
ହୃଦ୍-କନ୍ଦରୁ କରୁଣାର ସୁଧାଧାରା
କଣ୍ଠରେ ଅକୁଣ୍ଠିତା ।

ଧନ୍ୟ ଧନ୍ୟ ନୃପମଣି ରାମଚନ୍ଦ୍ର
ସୁଭଗ ସୁବ୍ରତ

ବାମଣ୍ଡାର ସୁପ୍ରତିଷ୍ଠା – ବରଧନ
କଲ୍ୟାଣ–ନିରତା ।
ଏ ରାଜ୍ୟର ସୁଶାସନ – ସୁପାଳନ –
ରୀତି – ଦରଶନେ
ରାମରାଜ୍ୟ ଦେଖିଲେ ବିଭୁବନ
ଉତ୍ଫୁଲ୍ଲଇ ମନେ ।
ପଲ୍ଲବ-କୁସୁମସଙ୍ଗେ କାନନଶ୍ରୀ
ଯଥା ସୁରଞ୍ଜିତା
ରାଜର୍ଷି ରାଜ୍ୟଶ୍ରୀ ତବ ଧନଧାନ୍ୟେ
ତେସନ ଶୋଭିତା ।
ହେ ପ୍ରଜାବତ୍ସଳ ତବ ବାତ୍ସଲ୍ୟର
କଲ୍ୟାଣ – ପରଶେ
ଫୁଟି ଆସୁଅଛି ପ୍ରଜା – ହୃଦ – ପଦ୍ମ
ବିକାଶ-ହରଷେ ।
ଅନାବିଳ ସ୍ନେହଭକ୍ତି-ସୁଧାଧାରା
ରାଜ-ପରିବାରେ ।
ପ୍ରବାହିତ ପରସ୍ପରେ କରପ୍ରିୟ
ପ୍ରେମ–ଅଧିକାରେ ।

ସମାଦୃଣେ ପ୍ରକାଶିତ ସୌଭ୍ରାତ୍ରର
ଯେଉଁ ପୁଣ୍ୟଛବି
ଦେଖିବାର ପ୍ରତିଚ୍ଛବି ମୁଗ୍ଧମୂର୍ତ୍ତି
ଅଟେ ରାଜ-କବି ।
କବି ଗୁଣୀ ଶ୍ରୀଶ୍ରୀଦେବ ବଳଭଦ୍ର
ପ୍ରମୁଖ ଅନୁଜେ
ସଖା ଓ ସଚିବ ରୂପେ ପ୍ରେମେବନ୍ଧି
ତବ ସ୍ନେହଭୁଜେ ।
ଶୁଦ୍ଧ ଅନୁରାଗ ଦ୍ୱାରା ଜଗତର
ସମ୍ପଦ-ସମ୍ଭାର
ଧନବଳ ବାହୁବଳ ଅଟଇ ହେ
ନିତାନ୍ତ ଅସାର ।
ବିଧାତାର ଆଶୀର୍ବାଦେ ଶୁଦ୍ଧପ୍ରୀତି
ସକଳ କ୍ଷେମଦ!
ମଧୁରୁଁ ମଧୁରତର କରୁ ତବ
ଜୀବନ ସର୍ବଦା ।

ସ୍ୱାର୍ଥର ଅନର୍ଥ ହେତୁ ହେ ସମର୍ଥ
ପରମାର୍ଥ-ରଥେ

ମତ୍ତ ଚଳାଇଛନ୍ତି ଶୁଭ୍ର ସୌନ୍ଦର୍ଯ୍ୟର
'ସୌରଭ–ଉଭସେ ।
ପରମାତ୍ମା ଧ୍ରୁବସତ୍ୟ ସେହିଏକା
ପରମ ସୁନ୍ଦର,
ଏ ବିଶ୍ୱପ୍ରକୃତି ଘୋଷେ ରସୋ ବୈ ସଃ
ଅମର ମନ୍ତ୍ରର ।
ଏ ମନ୍ତ୍ରର ମହାଗାନ ଅନୁଦାତ୍ତ
ଉଦାତ୍ତ ସ୍ୱରିତ
ଛନ୍ଦେ ଛନ୍ଦେ ମହାନନ୍ଦେ ବେଦ–ମନ୍ତ୍ର–
ନାଦେ ଝଙ୍କାରିତ ।
ସେ ଗମ୍ଭୀର ସେ ପ୍ରଶାନ୍ତ ସଂଗୀତର
ସୁଧାରସ – ପାନେ
ନନ୍ଦିତ ପଣ୍ଡିତବ ଗାଇଅଛି
ସୁଗମ୍ଭୀର ତାନେ,
"ବୈଦିକ ପ୍ରକୃତି" ଗାଥା ବିରଚିତ
ଦିବ୍ୟ ଅବଧାନେ
ଋଷିକବି ମାନସର ମହାଦ୍ଭୁତ—
ଭେଦ୍ୟା ପ୍ରଣିଧାନେ ।

ବ୍ୟୋମସ୍ପର୍ଶୀ ସେ ଧ୍ୟାନର ମହାତୁଙ୍ଗ
ଶିଖରୁ ଓହ୍ଲାଇ
ନମ୍ରେ ଏସଂସାର - କ୍ଷେତ୍ରେ ପ୍ରେମପୂତ
ନୟନ ବୁଲାଇ
ଦେଖିଅଛ ଋଷିନେତ୍ରେ ଚରୋଭେଦ-
ଜୀବ ଜଗତରେ
ରସମୟୀ ବିଶ୍ୱଲକ୍ଷ୍ମୀ କରୁଛନ୍ତି
ଲୀଳା ଚରାଚରେ ।
ପ୍ରୀତିର ଅମରାବତୀ ନରନାରୀ-
ଯୁଗଳ - ଅନ୍ତରେ,
କାବ୍ୟର ନନ୍ଦନବନେ କବିବୃନ୍ଦ-
କଳ୍ପ - ନିକୁଞ୍ଜରେ
ଅଙ୍କିତ ଯେ ମିଳନର ବିରହର
ଛବି ଅନୁପମ ,
ସଂଗୀତ ଯେ ପ୍ରେମଗାଥା ନାନାସ୍ୱରେ
ଶ୍ରାବ୍ୟ ମନୋରମ ,
ସେହିପ୍ରୀତି ଅବତାର ମର୍ତ୍ତ୍ୟବାସୀ
ନର ନାରୀ - ପ୍ରାଣେ

ବୈକୁଣ୍ଠ କରଛ, ମର୍ତ୍ତ୍ୟ ଆଦର୍ଶରେ
ଅମୋଘ ସନ୍ଧାନେ ।
ସେହି ପ୍ରୀତ, ବଳଦ୍ବିଜୀ, ମହାଶ୍ୱେତା –
ପୁଣ୍ଡରୀକ – ପ୍ରାଣେ
ଦେଖାଉଛ ସ୍ୱଳକର ଅଭିନବ
କାଦମ୍ବରୀ – ଗାନେ
ତଥିପରେ ବରଷିତ ହେଉ ସ୍ୱର୍ଗ-
କୁସୁମ- ଚନ୍ଦନ
ସର୍ବଥା ସାର୍ଥକ ହେଉ ତବ କବି-
ପ୍ରାଣର ସାଧନ ।
ଅତୀତ ଯୁଗର କାବ୍ୟରସ ପାନ
ତନ୍ମୟ ମାନସରେ,
ଯୁଗଯୁଗାନ୍ତ-ର ସେହି ପ୍ରେମଗାଥା
ଗୁଣି ପ୍ରେମାଦରେ,
ସେ ଆଲେଖ୍ୟ, ସେ ସଙ୍ଗୀତେ ଅର୍ପି ନବ
ଅର୍ଥର ଗୌରବ,
ରଚୁଛ ତନ୍ମୟମନେ କବିତାର
ମାଳା ଅଭିନବ ।






ଆଦ୍ୟଯୁଗେ ଆଦ୍ୟରସ ପ୍ରସବିତା
ଯେଉଁ ପୁଷ୍ପଶର
ଫୋଡ଼ୁଥିଲା ନରନାରୀ-ବକ୍ଷ ଭେଦି
ପ୍ରେମର ନିର୍ଝର,
( ପାଷାଣୁ ଫୋଡ଼ିଲେ ଯଥା ସାନୁକରେ
ଉଷ୍ଣ ଉଦକର
ଭୀଷ୍ମ ତୃଷା-ତୃପ୍ତି-ଅର୍ଥେ କୁରୁକ୍ଷେତ୍ରେ
ପାର୍ଥ ବୀରବର । )
ସେ ଶର ଲେଖଇ ନିତ୍ୟ ବିରହୀର
ହୃଦୟ-ରୁଧିରେ,
ଅବା ମିଳନର ମୁଗ୍ଧ ମଧୁମୟ
ସ୍ୱସ୍ତୀପତ୍ର-ନୀରେ,
ଯେଉଁ ମହା ପ୍ରେମଗାଥା, କଳୁଷିତ
ବୀଭତ୍ସ ଆକାରେ
ନୁହେ ତାହା, କିନ୍ତୁ ତାହା ମର୍ମେ ମର୍ମେ
ସ୍ୱର୍ଗର ଆସାରେ ।
ବ୍ରହ୍ମ-ପଦ୍ମୋଦ୍ଭବା ପ୍ରୀତି ବ୍ରହ୍ମପଦୀ
ବୈକୁଣ୍ଠ ପ୍ଳାବନୀ



ଜୀବର ପରମ ସଙ୍ଗେ ପରପ୍ରୀତି
ପ୍ରାଣ-ପ୍ରହ୍ଲାଦନୀ
ବିକଶିତ ହେବ ବୋଲି ଜୀବାତ୍ମାର
ହୃଦ-ଶତଦଳେ ।
ନରନାରୀ ସର୍ଷଣରେ ପ୍ରୀତିଲୀଳା
ବ୍ୟକ୍ତ ଭବ-ତଳେ ।
ସେହି ପ୍ରାଣ-ପ୍ରଣୟର ପୁଣ୍ୟରସ
ସୌନ୍ଦର୍ଯ୍ୟ-ସାଗରେ
ଭସାଏ ଭସାଏ ଯେହ୍ନେ ସଂସାରର
ଶୁଷ୍କ ଦଗ୍ଧାନ୍ତରେ,
କବି ସେହି, ଋଷି-ସେହି, ଆଦିକବି-
ବିଧାତାର ବରେ
ବାଲ୍ମୀକି ପରିଏ ନରେ ବସାଏ ସେ
ଦେବ-ଆସନରେ ।

ବିଜ୍ଞାନର ମହାଯୁଗ ସମାଗତ
ଏ ଧରଣୀ-ତଳେ
ଜୟବୈଜୟନ୍ତୀ ତାର ଉଡୁଅଛି
ଏ ମହୀମଣ୍ଡଳେ ।

ବିଜ୍ଞାନହିଁ ମହାଶକ୍ତି, ବିଜ୍ଞାନହିଁ
ଅମୋଘ କୁଞ୍ଚିକା
ଫେଡ଼ିବାକୁ ବ୍ରହ୍ମାଣ୍ଡର ଗୂଢ଼ତମ
ରହସ୍ୟ-ପେଟିକା ।
ବିଜ୍ଞାନ ଦୁର୍ବଳ କ୍ଷୁଦ୍ର ମାନବର
ଶିରେ ଲଲାଟରେ
ସମ୍ରାଟ-ମୁକୁଟ ଦିଏ ପିନ୍ଧାଇଣ
ମହା ସମାଦରେ ।
ବିଶ୍ୱର ବିଶ୍ୱର-ପ୍ରାଜ୍ଞ ବିଜ୍ଞାନର
ଆଶ୍ଚର୍ଯ୍ୟ ସାଧନ,
ରାଜ୍ୟତନ୍ତ୍ରୀ-ଚାଳନାରେ ଗୁରୁ-ଗର୍ବ
ତାର ପ୍ରୟୋଜନ ।
ଲଗାଉଛନ୍ତି ସେ ବିଜ୍ଞାନେ ରାଜ୍ୟହିତେ
ରାଜ୍ୟ-କର୍ଣ୍ଣଧାର ,
ବିଜୁଳି ଖଟୁଛି ତେଣୁ ଦାସୀରୂପେ
ବାହ୍ମଣ୍ଡା-ସଂସାର ।
ତେଣୁ ନବ ଶିଳ୍ପ-ଶାଳା ଆବିଷ୍କରଣ
ନବ କୃଷିକ୍ଷେତ୍ର,

କେତେ କଳିଯୁଗ-କାଳ କଳଇବେ
ଦର୍ଶକର ନେତ୍ର ।
ତେଣୁଁ ମହାଦେବୀ-କୁଲ୍ୟା ନବନଦୀ
ବହିବ ଅବାରେ
ଶସ୍ୟ-ଶ୍ୟାମା ଏ ଧରଣୀ ବହୁଗୁଣେ
ଶୋଭିବ ରୁଚିରେ ।
ପ୍ରଜାଶିକ୍ଷା ଜ୍ଞାନ-କର୍ମ-ଯୋଗେ ହେଉ
ନିତ୍ୟ ଅଗ୍ରସର
ବିଭୁପଦେ ଏ ପ୍ରାର୍ଥନା ଶୁଭାଶଂସୀ
ଏ ଦୀନ ଜନର ।
କିନ୍ତୁ ଅହେ ସୂକ୍ଷ୍ମଦର୍ଶୀ ବିଚାରନ୍ତୁ
ସୁଧୀର ଚିନ୍ତନେ
ବିଜ୍ଞାନ ଅପରା ବିଦ୍ୟା ମୋହ-ପାଶେ
ବାନ୍ଧଇ ସେ ଜନେ ।
ପରା ବିଦ୍ୟା-ସୁଶାସନେ ନୋହିଲେ ସେ
ସୁପରିଚାଳିତ
ଅସଂକ୍ତି-କଳୁଷି ରହି ନର ପ୍ରାଣୁ
ନୋହିବ କ୍ଷାଳିତ ।

ପ୍ରାଚୀନ ଭାରତେ ତେଣୁ କ୍ଷତ୍ରର୍ଷଭ
ମହାତ୍ମା ସରବେ
ଜନକାଦ୍ୟ ରାଜ-ଋଷି ପ୍ରଜ୍ଞାନର
ଅମୋଘ ଗୌରବେ
ଅନୁଭବ ସୁଗଭୀର ସୁପ୍ରଶାନ୍ତ
ପ୍ରଣିଧାନ-ବଳେ
ଚରମ ପରମ ଶ୍ରେୟ ଦେଖିଥିଲେ
ବ୍ରହ୍ମ-ପଦତଳେ ।
ପ୍ରଜ୍ଞାନହିଁ ବ୍ରହ୍ମଜ୍ଞାନ ପରା ବିଦ୍ୟା
ପରମ ପ୍ରମାଣ
ଶ୍ରଦ୍ଧାଭରେ ସେ ପ୍ରମାଣେ ପରିମାଣି
ବିଜ୍ଞାନର ମାନ
ବିଜ୍ଞାନ-ବଳରେ ଦେଖି ବିଶ୍ୱ ମଧ୍ୟେ
ବିଶ୍ୱଜନ୍ମୀ ଋତ ‡
ପ୍ରଜ୍ଞାନ-ପ୍ରଭାବେ ଜୀବ ଜିଣି ମୃତ୍ୟୁ
ଭୁଞ୍ଜଇ ଅମୃତ ।
ସେ ଅମୃତ, କରୁଣାର ଅନ୍ତହୀନ
ନିର୍ଝରୁ ଝରଇ

‡ ସନାତନ ନିୟମ ।

ଅମୃତ ପିପାସୁ କ୍ଷୁଦ୍ର-ସନ୍ତାନର
ପିପାସା ହରଇ ।
ଯେସନେହେ ଧେନୁ ସ୍ତନୁ କ୍ଷୀରାମୃତ
ହୋଇଣ କ୍ଷରିତ
କ୍ଷୁଧାତୁର ବତ୍ସ-କ୍ଷୁଧା ସ୍ନେହାବେଗେ
କରେ ନିଦୂରିତ ।

ତାହାପୃ ସାହିତ୍ୟ ଯୋଗେ ଅଭ୍ୟୁଦୟ
ଘଟଇ ଜାତିର,
ତେଣୁ ସାରସ୍ୱତସାରେ ଗଢିବାକୁ
ବାଙ୍ମୟ-ମନ୍ଦିର,
ପିତୃଦେବ-ପଦଚିହ୍ନ ଅନୁସରି
ପରମ ଯତନେ
ଡାକିଲ ସାହିତ୍ୟ-ହିତ ସାଧୁଅଛ
ଅକୁଣ୍ଠିତ ମନେ ।
ସାହିତ୍ୟ-ଉନ୍ନତି-ଅର୍ଥେ ଶ୍ରଦ୍ଧାପୂତ
ତବ ଆୟୋଜନ
ସାର୍ଥକ ସଫଳ ହେଉ, ଲଭୁଦେଶ
ନୂତନ ଜୀବନ ।

ଝଞ୍ଜ ବର୍ଷପରେ ଅଙ୍କ ଏ ନମ୍ରନ
ଦେଖିଲୁ ଆବର
କେ ବିଦନ୍ତା ପର୍ବତପ୍ରଷ୍ଠେ ତପୋମୂର୍ତ୍ତି
ପ୍ରଧାନପାଠରେ ।
କି ଭୂମା ତପସ୍ୟାବ୍ରତେ କି ଅଧୀନ
ଅମୃ-ବ୍ୟର୍ଜନେ
ସେ ମହା ପ୍ରପାତ ରତ କଲ୍ପବ୍ୟାପୀ
ସଂକଳ୍ପ - ସାଧନେ
ସଞ୍ଚିତ ଅନନ୍ତ ତପୋ ସ୍ରଶି ପ୍ରାପ୍ୟେ
ତାର ବାଉବଣି
ଢାଲି ଦେଉଅଛୁ ପ୍ରେମେ ଧସ୍ରାତଳେ
ସେ ମହା ସନ୍ନ୍ୟାସୀ ।
ଊର୍ଦ୍ଧ୍ୱକୁ ଅନାଇ ସଦା କି ଅଭସ୍ଥ
ଅଶା-ଅଶ୍ୱାସର
କି ଗମ୍ଭୀର ବେଦ-ମନ୍ତ୍ର ଝଙ୍କାରରେ
ଭରଇ ଅମ୍ବର
ଏ ପରମୋଦାର ଦୃଶ୍ୟ ଏହି ମହା
ତପସ୍ୟା - ମୂରତି

ଦେଖି ଦେଖି କି ଆନନ୍ଦ ଲଭୁଅଛୁ
ହେ ବାମଣ୍ଡା-ପତି !
ଏହି ପୁଣ୍ୟ ପୀଠ ପାର୍ଶ୍ୱେ ତୋଳୁଅଛୁ
ବସନ୍ତ ନିବାସ
ତହିଁ ପରେ ଆଶୀର୍ବାଦ ବରଷନ୍ତୁ
ପ୍ରଭୁ ଶ୍ରୀନିବାସ ।
ପତ୍ରଶେଷେ ଏ ପ୍ରାର୍ଥନା ଜଣାଉଛୁ
ରାଜ-ସନ୍ନିଧାନେ
ଏ ନାଭୂର ତୀର୍ଥ-ଶାନ୍ତ ବଢ଼ୁଥିବ
ପବନ ବିଧାନେ ।

ଶ୍ରୀମଧୁସୂଦନ ରାଓ
୨୩ — ୫ — ୧୧

Printed by D. Garnayak,
The Hitaishini Electric Machine Press
Bamra